ପଡ଼ିଦାନୀ

ଓ

# ମହାଲକ୍ଷ୍ମୀ ସ୍ତୁତି

ଶ୍ରୀ ଅକ୍ରୁର ସାଧୁଶର୍ମାଙ୍କ ଦ୍ୱାରା

ରଚିତ ଓ ପ୍ରଥମବାର ପ୍ରକାଶିତ



ଶ୍ରୀମାନ୍ ବାଞ୍ଛାନିଧି ସାଧୁଶର୍ମାଙ୍କ ଦ୍ୱାରା ସଂଶୋଧିତ

ମୁଦ୍ରାକର—ଶ୍ରୀ ଶ୍ୟାମସୁନ୍ଦର ପାଢ଼ୀ
ଶାରଦା ପ୍ରେସ୍, ବ୍ରହ୍ମପୁର (ଗଞ୍ଜାମ)
୧୯୩୨

ମୂଲ୍ୟ ୫ ୦ / ୦

# ଓଁ ତତ୍ସତ୍

ଭକ୍ତମାନେ ଏହି ଅମୂଲ୍ୟରତ୍ନ ମହାଲକ୍ଷ୍ମୀ ସ୍ତୁତି ଶ୍ରବଣ କରି ଜୀବନର ସାର କରନ୍ତୁ । କାହିଁକିନା ଯାହାଙ୍କର ଦୃଷ୍ଟିରେ ନିଜଗତ ଓ କୀଟୁ ବ୍ରହ୍ମଯାଏ ସୃଷ୍ଟିହୁଅନ୍ତି । ତାହାଙ୍କର ସ୍ତୁତି ପଠନ କରିବାର ଆମ୍ଭମାନଙ୍କର କର୍ତ୍ତବ୍ୟ କର୍ମ । ଇତି ।

ଶ୍ରୀଲକ୍ଷ୍ମୀନାରାୟଣାଭ୍ୟ ନମଃ

# ମହାଲକ୍ଷ୍ମୀ ସ୍ତୁତି

ନମସ୍ତେ ମହାଲକ୍ଷ୍ମୀ ଗୋ ବୈକୁଣ୍ଠ ବାସିନୀ ।
ଅଭୟ ପଦତଳେ ଗୋ କରୁଛି ବନ୍ଦନ ।୧।

(ଜୟ) ଜୟ ମହାଲକ୍ଷ୍ମୀ ଗୋ ବିଷ୍ଣୁଙ୍କ କୋଳେ ଥାଅ ।
ଜଗତଜନଙ୍କୁ ପଦ୍ମ ଦେବାକୁ ବସି ଥାଅ ।୨।

ଜୟ ଜୟ ମହାଲକ୍ଷ୍ମୀ ଗୋ କ୍ଷୀରସିନ୍ଧୁ ସୁତା ।
ଏ ଘୋର ବିପଦୁ ମତେ ଉଦ୍ଧର ଜଗନ୍ମାତା ।୩।

ଜୟ ଜୟ ମହାଲକ୍ଷ୍ମୀ ସ୍ୱର୍ଗ ମହାରାଣୀ ।
ଅଛ ଅନ୍ତରଙ୍ଗେ ଡାକିଲେ ଶୀଘ୍ର ତାରିଣୀ ।୪।

ସେତେ ଦୁଃଖରୁ ତାହାକୁ ଦେଲଟି ଉଦ୍ଧାର ।
ଧନ ଜନ ରହିଲେ ତା ପୁର ଗଲା ପୂର ।୫।

ଏ ବିପତ୍ତିରୁ ଉଦ୍ଧାର କରିବ ବୋଲି ତୁମ୍ଭେ ।
ଅଛ ଅନ୍ତରଙ୍ଗେ ଡାକୁଛି ନିର୍ଗୁଣ ବର୍ଣ୍ଣା ଲଭେ ।୬।
ନମସ୍ତେ ମହାଲକ୍ଷ୍ମୀ ଗୋ ପଦ୍ମନାଭ ବନ୍ଧୁ ।
ପଦ୍ମେ ଜନଙ୍କର ମାଗୋ ଗୁହାରି ଶୁଣୁଥାଅ ।୭।

ମହାଘୋର ସଙ୍କଟରେ ଅଛି ମୁହିଁ ପଡ଼ି ।
ଦବାନଳୀ ତନ୍ତ୍ରା ମାରେ ଯାଉଅଛି ସଢ଼ି ।୮।

ବିପଦଭଞ୍ଜନୀ ବାନା ଉଡାଅ ନିଜଗତେ ।
ବିପଦାର୍ଣ୍ଣବରୁ ମାଗୋ ଉଦ୍ଧାର କର ମତେ ।୯।

ନମସ୍ତେ ମହାଲକ୍ଷ୍ମୀ ଗୋ ଅଭୟ ବରଦାନୀ ।
ବିନମ୍ରେ ଡାକୁଛି ବାରେ ଦେଖ ମୋ ଦର୍ଶିନୀ ।୧୦।

ଏ ଦୁଃଖ ସାଗରେ ମୁହିଁ ଭାସୁଅଛି ମାତ !
ତୁମ୍ଭ କୃପାବଳେ ନରଖିଲେ ହେଲି ହତ ।୧୧।

ନମସ୍ତେ ମହାଲକ୍ଷ୍ମୀ ବ୍ରହ୍ମାଣ୍ଡ ପାତ୍ର ଜନ ।
ବିପଦୁ ଉଦ୍ଧର ମୋତେ ଜଗତେ ରଖ କୀର୍ତ୍ତି ।୧୨।

ସଦା ବିପଦାର୍ଣ୍ଣବରେ ଭାସୁଅଛୁ ମୁହିଁ ।
ଉଦ୍ଧାର କରିବାକୁ ମୋତେ ସାହା କେହି ନାହିଁ । ୧୩।

ତୁମ୍ଭ ଶ୍ରୀପଦରେ ମାଗୋ ବଳାଉଛୁ ଆଶା ।
ନିଶ୍ଚେ ଉଦ୍ଧରିବେ ବୋଲି କରୁଛୁ ଭରସା । ୧୪ ।

ତୁମ୍ଭ ପ୍ରସନ୍ନରେ ମାଗୋ ଦରିଦ୍ର ରାଜା ହୋଇ ।
ତୁମ୍ଭ ଅପ୍ରସନ୍ନେ ରାଜା ଦରିଦ୍ର ହୁଅଇ । ୧୫ ।

ତୁମ୍ଭେ ନ ରଖିଲେ ମାଗୋ ଏଦୀନ ଜନକୁ ।
ନିଶ୍ଚେ ଗଲି ଘରି କେହି ନାହିଁ ରଖିବାକୁ । ୧୬ ।

ଶ୍ରୀଚରଣେ ଆଶା କରି ଭାସୁଛୁ ଦୁଃଖରେ ।
ତୁମ୍ଭପରି ଦୁଃଖନାଶିନୀ ଥାଉଁ ଏ ସଂସାରେ । ୧୭ ।

ଜୟ ଜୟ ମହାଲକ୍ଷ୍ମୀ ଗୋ ବିପଦ ଭଞ୍ଜନୀ ।
ବିପଦକାଳେ ଡାକିଲେ ଉଦ୍ଧାର କରୁ ପୁଣି । ୧୮ ।

ସଙ୍କଟନାଶିନୀ ମାଗୋ ଦୟାକର ମୋତେ ।
କରି ପ୍ରସାଦ ମାଗୁଛୁ ତୁମ୍ଭ ପାଦଗତେ । ୧୯ ।

ବ୍ରାହ୍ମଣଠାରୁ ଚଣ୍ଡାଳ କୀଟପତଙ୍ଗନ୍ତେ ।
ତୁମ୍ଭପଦ ନଖାଇ ଅଛନ୍ତି ଜଗତେ । ୨୦ ।

ତୁମ୍ଭ ଦ୍ରୋହି ଜନେ ମାଗୋ ଅର୍ଣ୍ଣ ନ ମିଳଇ ।
ଯେତେ ଅରଜିଲେ କେବେ ପେଟ ନ ପୁରଇ ।୨୧।

ନମସ୍ତେ କମଳା ମାଗୋ ଅତି ଦୟାବନ୍ତି ।
ସ୍ଥାବର ଜଙ୍ଗମ କୀଟ ଆଦି ପାଳୁ ନିତି । ୨୨ ।

ଜୟ ଜୟ ମହାଲକ୍ଷ୍ମୀ ଗୋ କରିବାରେ ଦୟା ।
ଏଦୀନ ଜନରେ ମା ଛ ନକରଗୋ ମାୟା । ୨୩ ।

ତୁମ୍ଭ ଦୟାବଳେ ମାଗୋ ଦରିଦ୍ର ଜନର ।
କି ଦୁଃଖ ଅବା ଅଛି ସର୍ବ ସୁଖ ତାର । ୨୪ ।

ତୁମ୍ଭ ଦୟା ବିନେ ମାଗୋ ବହୁ ଦୁଃଖ ପାଇ ।
ଚଣ୍ଡାଳ ହୁଅଇ ଅର୍ଣ୍ଣ ବସ୍ତ୍ର ନମିଳଇ । ୧୫ ।

ତୋତେ ନଭଜଇ ମାଗୋ ସଂସାରେ ଯେଉଁ ପ୍ରାଣୀ ।
ଦରିଦ୍ର ହୁଅଇ ବହୁ ଦୁଃଖ ପାଏ ପୁଣି । ୧୬ ।

ପ୍ରାତଃରୁ ଉଠି ଯେ ତୋର ନାମକୁ ସୁମରଇ ।
ଧନଜନ ଜନ୍ମରେ ସର୍ବ ସୁଖିହୋଇ । ୧୭ ।

ଧନଜନେ ଆଶା ନକରି ଯେ ସ୍ମରଇ ।
ସକଳ ପାପନାଶେ ବୈକୁଣ୍ଠେ ବସଇ । ୧୮ ।

ନମସ୍ତେ କମଳାମାଗୋ ସାଗର ଦୁହିଣୀ ।
ନମସ୍ତେ କମଳା ମାଗୋ ବିଷ୍ଣୁଙ୍କ ଘରଣୀ । ୧୯ ।

ବ୍ରହ୍ମା ହର ତୋର ପଡ଼ା ଖାଇଯେ ବଞ୍ଚନ୍ତି ।
ଦେବତାମାନେ ତୋର ପଡରେ ସୁଖିହୋନ୍ତି । ୨୦ ।

ଶୁଣିଅଛୁ ଅହୁର ପୂର୍ବର ତୋ ଚରିତ ।
କୃଷ୍ଣ ବଳରାମ ଖାନ୍ତି ତୋର ପଡ ଭାତ । ୨୧ ।

ମାର୍ଗଶିର ମାସର ଗୁରୁବାର ଦିନ ।
ଜଗତେ ପଡ଼ା ଦେବାକୁ କଲୁତୁ ଭ୍ରମଣ ୨୨ ।

ଶ୍ରୀଅଚାଣ୍ଡାଳୁଣୀ ଘରେ ପ୍ରବେଶ ହୋଇଲୁ ।
ତାର ଦୁଃଖ କଷ୍ଟ ଫେଡ଼ି ଧନରେ ପୂର୍ଣ୍ଣ କଲୁ ।୨୪।

ଜଗନ୍ନାଥ ବଳରାମ ଆସିବାର ବେଳେ ।
ଚଣ୍ଡାଳୁଣୀ ଘରେ ଉଚ୍ଛା ଦେଖିଲେ ତୋତେ ହୋଲେ
ଭାଇଙ୍କି ଧିକାର ତୋତେ ଦେଲେ ଘଉଡାଇ ।
ସମୁଦ୍ର କୂଳେ ଉଆସ ତୋଳିଲୁ ତହିଁ ଯାଇ । ୨୫ ।

ତୋ ବିହୁନେ ରାମକୃଷ୍ଣ ଦରିଦ୍ର ହୋଇଲେ ।
ତୁମ୍ଭେ ବସ୍ତଟେକ ଅର୍ଣ୍ଣ ଦେବାରୁ ଖାଇଲେ । ୨୬ ।

ହଷ୍ଟି କମଳନୀ ମାଗୋ ହଷ୍ଟ ଗଥିଇଲୁ ।
ସେତ୍ରେବଡ଼ ପ୍ରଭୁଙ୍କୁ ଦରଦ୍ର କରାଇଲୁ । ୩୭ ।

ତୋ କହୁନେ ସଂସାରେ ଅଜ୍ର କେ ବଢଅଛୁ ।
ଚଉଦ ଭୁବନେ ତୋର ଯଶ ପୂରିଅଛୁ । ୩୮ ।

ହୀନ ଅରକ୍ଷିତ ହୋଇ ଡ଼ାକୁଛୁ ତୁମ୍ଭଙ୍କୁ ।
ଅରକ୍ଷ କାଳରେ ସାହା ହୁଅ ଏଗୀନଙ୍କୁ । ୩୯ ।

ତୁମ୍ଭେ ନରଖିଲେ ମାଗୋ ହୋଇବି ଅନାସ୍ଥ ।
ଜୀବନ ଗଲିଷ୍ଟ ନଷ୍ଟେ କହୁଅଛୁ ସତ୍ୟ । ୪୦ ।

ଦୋଷ କରଥିଲେ ମାଗୋ କ୍ଷମାକର ଦୋଷ ।
ଏ ଅତଙ୍କ କାଳେ ମାଗୋ ନକର ମନେ ରୋଷ ।

ନଳନୀ ପତ୍ରରେ ଜଳ ଯେସନେ ଟଳମଳ ।
ଥସ୍ଥ ନୋହୁଛି ମୋ ମନ ବାତ ହୁଁ ଚଞ୍ଚଳ । ୪୧ ।

ବରୁବି କଣ୍ଡକ ମାଗୋ ବୁଦ୍ଧି ଦଶୁନାହୁଁ ।
ଶେଷକାଳେ ତୋର ପଦେ ମଧ୍ୟ ଅଛୁ ଦେଇ ।୪୩।

ରଖିବା ନରଖ ମାଗୋ ଲଗାଇଛୁ ଆଶା ।
ନିଶ୍ଚେ ଉଦ୍ଧାରିବ ବୋଲି କରୁଛୁ ଭରସା । ୪୪ ।

ଗରବଗଞ୍ଜନୀ ମାଗୋ ଗର୍ବକୁ ନସହୁ ।
ଗର୍ବଯେ କରଇ ତାର ଗର୍ବ ଚୂରିଦେଉ । ୪୫ ।

ତାଙ୍କୁ ମହା ଦୁଃଖରେ କରାଉ ଅଚଳ ।
ପୁଣି ତୋତେ ସ୍ମରିଲେ ମିଳେ ଅନ୍ନଜଳ । ୪୬ ।

କରୁଅଛୁ ମୁହିଁ ଅବା କରିବାରୁ ସର୍ବ ।
ସଙ୍କଟେ ପକାଇ ମୋର ଗର୍ବ କଲୁ ଖର୍ବ । ୪୭ ।

ଏବେ ତୋର ପଦେ ମାଗୋ କରୁଛୁ ପ୍ରମାଣ ।
ସଂକଟେ ପିଟାଇ ମୋର ପୂରିଅ ମନସ୍କାମ । ୪୮ ।

ନମସ୍ତେ କମଳା ମାଗୋ ନମସ୍ତେ ପଦ୍ମାଳୟା ।
ଏ ବିପଦ କାଳେ ମାଗୋ ହୁଅ ମୋତେ ସାହା ।

ବ୍ରହ୍ମାଣ୍ଡପାଳିନୀ ମାଗୋ ମହିମା ମହାମେରୁ ।
ନମସ୍ତେ ହରିପ୍ରୀୟା ମାଗୋ ଫେଡ଼ ଏ ସଙ୍କଟରୁ । ୫୦ ।

ନମସ୍ତେ ଇନ୍ଦିରା ମାଗୋ ନମସ୍ତେ ଲୋକମାତା ।
ମା ବୋଲି ଡାକୁଛି ମୁଁ ନଶୁଣ ବାରତା । ୫୧ ।

ଏବିପଦ କାଳେ ଯେବେ ନହେବୁ ମୋତେ ସାହା ।
ଛାଡ଼ିବ ନିଶ୍ଚୟ ମୋହଠାରେ ନାହିଁ ଦୟା । ୫୨ ।

ଏ ଜୀବନେ ଥିଲେ ଅଉ ନାହିଁ ମୋର ଆଶା ।
ତୁମ୍ଭ ପଦ୍ମପାଦେ ମାଗୋ କରୁଛି ଭରସା । ୫୩ ।

ସଂକଟ ଫେଡ଼ିବୁ ଯେବେ ସଂସାରେ ସୁଖି ହେବ ।
ତୋ ନାମକୁ ଭଜି ମଲେ ସଂସାରୁ ତରିବ । ୫୪ ।

ଏ ଦୁଇ କଥା ମାଗୋ ମନବାଞ୍ଛା ମୋର ।
ରଖ ଅବା ମାର ଅବା ଶୀଘ୍ର ଯାହା କର । ୫୫ ।

ବିଳମ୍ବ କଲେଣି ମାଗୋ କାର୍ଯ୍ୟ ହେବ ନାଶ ।
ଦାସ ଦୁଃଖରେ ଭାସିଲେ ଲଭିବ କି ପୌରୁଷ । ୫୬ ।

ଦୁଃଖ ଉଦ୍ଧାରଣୀ ବୋଲି କହିଲି ନିଶ୍ଚୟ ।
ରଖ ନରଖ ମୋ ମନ ଟଳୁଛି ସଂଶୟ । ୫୭ ।

ଦୁଃଖ ହେଲା ବୋଲି ମାଗୋ ନାହିଁ କରୁଛି ଭୟ ।
ତୁମ୍ଭ ଅଭୟ ପଦେ ମୁଁ କରିଅଛି ଲୟ । ୫୮ ।

ଏସଂକଟ ଯଦି ମାଗୋ ନଦେଇ ଥାନ୍ତୁ ମୋତେ ।
ତୋ ମହିମା ବୁଝି ଏବେ ଜଗତ କେମନ୍ତେ । ୫୯ ।

ଦୁଃଖ ଯଦି ନଥାନ୍ତା ଭଜନ୍ତା କେ ନାମକୁ ।
ପାମର ଦୀନ ଅକ୍ରୁର ଡରନ୍ତା କାହାକୁ ।

୰କବି ଗୋପାଳ କୃତ

ନବାକ୍ଷର

# ଅଧ୍ୟାତ୍ମ ରାମାୟଣ

ଭାଷା ସରଳ ଭାବ ମଧୁର

ମୂଲ୍ୟ ଏକଟଙ୍କା ଆଠଅଣା

ପ୍ରାପ୍ତିସ୍ଥାନ

ଶ୍ୟାମସୁନ୍ଦର ପାଢ଼ୀ

ପ୍ରୋପ୍ରାଇଟର

ଶାରଦା ପ୍ରେସ୍

ବ୍ରହ୍ମପୁର (ଗଞ୍ଜାମ)